# ପାରଲା ସମ୍ମିଳନୀ ।

ଶ୍ରୀ ରାମଚନ୍ଦ୍ର ରଥଙ୍କ ରଚିତ ।

ପାରଲା କଥାପଢ଼ି-ଶିରେ ଜାଣ୍ଡ ପଗଡ଼
ବାନ୍ଧ ହେ ଉତ୍କଳର ଭାଇ ।
ସମ୍ବଲପୁର ଯାଇ-ଦେଖି ମା ସମ୍ବଲାଇ
ଧ୍ୱଜା ଉଡ଼ାଅ ଗୀତ ଗାଇ ହେ ।

ଶ୍ରୀ ଗୋବନ୍ଦରଥଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।
ଇଉନିୟନ ପ୍ରେସରେ ମୁଦ୍ରିତ ।

Printed at the Union Printing Works,
by P. C. Mundul.
CUTTACK.
1915.

ମୂଲ୍ୟ ଏକଅଣା ମାତ୍ର ।

# ପାରଳା ସମ୍ମିଳନୀ ।

---

ରାଗକାମୋଦୀ

ପାରଳାଖେମଣ୍ଡିରେ, ମହାସାମାରୋହରେ, ଜାତୀୟସମ୍ମିଳନୀହେଲା, ଓଡ଼ିଆ ଭାଇମାନେ ଆସି ବେଶ ସଧାନେ, ମିଳନ୍ତେ ଜମିଗଲା ମେଳା ସେ, ସଭାପତି, ହୋଇଲେ ବାଙ୍କ ନୃପତି, ସୁସଭ୍ୟ ସୌମ୍ୟ ସେ ମୂରତି । ରାଜନ ଜମିଦାର, ଉତ୍କଳ ବାରମ୍ବାର ବସିଲେ ଲଗି କଚ୍ଛକଚ୍ଛ ହେ ସଭାପତି ।୧।

ସଭାଭବନ ଶୋଭା, ଦେଖିଲେ ମନଲୋଭା, କାରୁକାର୍ଯ୍ୟରଚନପ୍ରଭା । ଊର୍ଦ୍ଧ୍ୱରେ ଚନ୍ଦ୍ରାତପ, ଜେହାଭିଲ୍ଲ ଆତପ, ଅଧଃପ୍ରଦେଶେ ବସେ ସଭାସେ । ବେଦୀପଛେ, ବିବିଧ ରଙ୍ଗବର୍ଣ୍ଣ ଆଭା, ସୁଧର୍ମା ଜିଣି ଦଶେ ଶୋଭା । ମାଳମାଳ ତରଙ୍ଗୀ, ବୌଦ୍ଧବନ୍ଧୁ ତରୁଙ୍କ, ରହିଛି କତାହ୍ନା ବନ୍ଧବାସେ । ବେଦୀପଟ୍ଟରେ ।୨।

ଭାଇଏ ଭାଇସନେ, ବସିଗଲେ ଅସନେ, ସୋଦରଭ୍ରାତାପ୍ରେମ ଯେସନେ । ସଭାମଣ୍ଡପେ ଉଭାଁ, ପ୍ରତିଭାସମ୍ପାଦବା, ଯୁବାଏ ଉତ୍ସାହିତ ମନେ ସେ । ମଧୁବାବୁ, ବକ୍ତୃତାକଲେ ଉଦ୍ଦୀପନେ, ଶୁଣିଲେ ଶ୍ରୋତା ସ୍ଥିରମନେ । ବସିନିର୍ଭୟମନେ, ନିଷ୍ଠଳକରକଣ୍ଠେ, ପ୍ରସନ୍ନ ହୋଇ ସାବଧାନେ ସେ ମଧୁବାବୁ ।୩।

ପୁରୀ ସମ୍ବଲପୁର, କଟକ ବାଲେଶ୍ୱର, ଗଡ଼ଜାତର ଡେଲିଗେଟ । ହୋଇଏକଜେଭେଟ, ନଗଣିସାନଶ୍ରେଷ୍ଠ, ପୂରିଲା ବକ୍ତୃତାରେ ପେଟ ସେ । ସାନନ୍ଦରେ, ମାଜିଲା ଉତ୍କଳୀୟ ଥାଟ, ଠେଲାଠେଲିରେ ମୁଦବାଟ । ପେଲାପେଲିଭାବରେ, ସଙ୍କଳେ ସ୍ୱଭାବରେ, କରନ୍ତି ଏକତାର ହାଟ ସେ । ସାନନ୍ଦରେ । ୪ ।

---

* ( ଡିସେମ୍ବର ୨୫ ଓ ୨୬ ତାରିଖ ୧୯୧୪ )

ବାଳକ ଯୁବା ବୃଦ୍ଧ, ଅଜ୍ଞ ଜ୍ଞାନ ସମୃଦ୍ଧ, ପଣ୍ଡିତ ପାଠୁଆ ଗୃହିଜ୍ଞାନୀ । ସାହୁକାର ଖଃଜକ, ସ୍ୱାମୀ ସହ ସେବକ, ଏକଠେ ବସିଂ ଧନୀ ମାନୀ ସେ । ସମ୍ମିଳନୀ । କୋହନ୍ତି କୋଣ୍ଠିବ ଅବନୀ, ଥିଲା 'ଯେ ଚମତ୍କାର ବନ୍ଦ । ଇଣ୍ଡ ପୂର୍ବରୁ ନବ, ସମ୍ମିଳନୀ ବିଭବ, କେ ଦେଖିଛ କି ? ଏଁ ମେଦିନୀ-ସେ ସମ୍ମିଳନୀ । ୫ ।

ପାରଳା ଗଜପତି, ମଞ୍ଜୁଷାର ଭୂପତି, ଟିକାଲି ଯୁବରାଜ ମୂର୍ତ୍ତି । ବିରାଜି ଥିଲେ ଅତି, ଯତନେ କରି ସ୍ଥିତି, ବଢାଇ ସ୍ୱଜାତୀୟ ଧୃତି ସେ । ଭାଇମାନେ । ଭାଇ ଦେଖିବେ ଧାଇଁ ଛନ୍ତି, କା ପରେ କେ ଯାଇ ପଡ଼ନ୍ତି । ପ୍ରେମ ଆନନ୍ଦଭରେ, ସକଳେ ସମାନରେ, କର କାମନା ଦେଶୋନ୍ନତି ସେ । ଭାଇମାନେ । ୬ ।

ଅଜ୍ଞ କି ଆନନ୍ଦରେ; ସମସ୍ତଙ୍କ ହୃଦରେ, ବାଜେ ଜାତୀୟ ଶଙ୍ଖ-ଧ୍ୱନି । ଉତ୍ସାହେ ଅମୃତ ବା, ଅଳସ ଛାଡ଼ି ହିସା, କି ଜାଣେ କି ମନ୍ତ୍ରର ଘେନ ସେ । ଭାଇଙ୍କର । ସକଳ ଦେହରେ ଧମନୀ, ବିଦ୍ୟୁତ ବେଗ ଧରନ୍ତିଣି । ସ୍ୱଭ ପ୍ରଖରତରେ, ବ୍ୟକ୍ତହୋଇ ବ୍ୟଗ୍ରରେ ଉତ୍ସାହସ୍ରୋତ ବୋହିଲାଣି ସେ । ଭାଇଙ୍କର । ୭ ।

ମାତୃମୁଖରକାଳୀ, ଲଭାଇଦେବାଲାଳି, ହୃଦେଗଓଡ଼ିଆ ଫୁଲାଳ, ପକ୍ଷୀନେ ଅଟେଗବଳ, ବାଧାବିଘ୍ନବିଦଳ, ପ୍ରଫୁଲ୍ଲମନେ ମାତ୍ର ଭାଲସେ । ନସମ୍ଭାଳ, ମଂନପ୍ରାଣକୁ ଦେଇଢ଼ାଳ, ଅଗପଛର କଥାଭୁଲି । ଗାଇ ଜାତୀୟଗୀତ, ଅନ୍ୟୋନ୍ୟ କରିପ୍ରୀତ, ଗର୍ବରେ ଢେରଛନ୍ତି.ଛାତି ଯେ ନସମ୍ଭାଳ । ୮ ।

ମହୋତ୍ସାହେଆଜ, ଉତ୍କଳୀୟ ସମାଜ, ବିରାଜ ପାରଳାଗଡ଼ରେ । କୋଇମନେ ଅଭ୍ୟାସୀ, ଯେତେ ଓଡ଼ିଆଭାଷୀ, ସ୍ନେହ ଦେଖାନ୍ତି ପରସ୍ପରେ ଯେ । କହିବା, ଉଣ୍ଟିବା ହେବ ଅଜଲାଭ, କାପରାକ୍ରମ ଏହିଁଠାବ । ସମସ୍ତଙ୍କର ଏକ ଭାବର ପ୍ରାଦୁର୍ଭାବ ନ ଜାଣିଣ କାହାର ପ୍ରଭାବ ସେ, କହିବା । ୯ ।

ପ୍ରଥମେ ଭାରତର, ବନ୍ଦନା ଜାତୀୟର, ଦ୍ୱିତୀୟେ ଓଡ଼ିଆ ସଙ୍ଗୀତ । ତୃତୀୟେ ଅଭ୍ୟର୍ଥନା, ସଭାପତି ଅର୍ଚ୍ଚନା, ପୁଣି ସେ ହେଲେ ନିର୍ବାଚିତ ସେ । ଚତୁର୍ଥରେ । ଆଉମ୍ଭ ତାଙ୍କର ବକ୍ତୃତା, ଶୁଣିଣ ତୃପ୍ତ ହେଲେ ଶ୍ରୋତା, ପଞ୍ଚମରେ ଯେ କାର୍ଯ୍ୟ ନିର୍ବାହକ ସମାଜ ରିପୋର୍ଟ ପାଠ ପ୍ରଗ୍ରତା ସେ । ଚତୁର୍ଥରେ । ୧୦ ।

ଷଷ୍ଠେ ଅନୁପସ୍ଥିତ, ସଭ୍ୟଙ୍କର ଚରିତ, ଠେଠନେ ହୋଇଲା ବିଦିତ ସପ୍ତମେ ସଭାପତି, ବକ୍ତୃତା ଉପପତି, କଲେ ଅଷ୍ଟମେ ସୁସଙ୍ଗୀତ ସେ ନବମରେ । ହେଲା କର୍ତ୍ତବ୍ୟ ନିର୍ଦ୍ଧାରଣ, ସମ୍ରାଟ ବିଜୟ କାରଣ । ପ୍ରସ୍ତାବ କ୍ରମେ ଅନୁମୋଦନେ ସମର୍ଥନେ ସମର୍ଥ ହେଲେ ସଭ୍ୟଗଣ ସେ । ନବମରେ । ୧୧ ।

ଭାରତ ଙ୍କରଷର, ଭାଇସରାୟଙ୍କର, ପତ୍ନୀ ପୁତ୍ର ଶୋକଦୁଃଖିତ ? ଗଭୀର ଶୋକଭାର, ହେବାକୁ ପରିହାର; ବି ବାରିଷ୍ଟର ପ୍ରସ୍ତାବିତ ସେ । ଗଦାଧର । ମହନ୍ତ ରାମାନୁଜ ଦାସ, ଅନୁମୋଦନ କଲେ ଭାଷ । ଟିକାଇର ନରେଶ ଚନ୍ଦ୍ରଶେଖର ଦାସଙ୍କରେ ହୋଇଲା ସମର୍ଥିତ ସେ । ଗଦାଧର । ୧୨ ।

ମିଷ୍ଟର ମଧୁବାବୁ, ସମ୍ପାଦଲେ ଏ ସବୁ, ପଞ୍ଚମଜର୍ଜଙ୍କ ଜୟଭୂ । ପୁଣି ବଡଲାଟଙ୍କୁ, ଲର୍ଡ଼ ଶ୍ରୀ ହାର୍ଡିଞ୍ଜଙ୍କୁ, ତାଙ୍କର ଲେଡ଼ିଙ୍କି ପୁତ୍ରଙ୍କୁ ସେ ସଂକଟରୁ । ଗଭୀର ଶୋକ ସାଗରରୁ, ପ୍ରଗାଢ଼ ମାନସ ଚିନ୍ତାରୁ ସାନ୍ତ୍ୱନା ଦେବାପାଇଁ, ଶୂନ୍ୟ ମାର୍ଗକୁ ଚାହିଁ, କଲେ ପ୍ରାର୍ଥନା ଈଶ୍ୱରଙ୍କୁ ସେ । ସଂକଟରୁ । ୧୩ ।

ଶେଷା ବୃଦ୍ଧି ପୂର୍ବକ, ଉନ୍ନତ ଓଡ଼ିଆଙ୍କ, ଆଧୁନିକ ପ୍ରକାରେ ଭାବ କଲେ ବହୁତ ଯୁକ୍ତି, ପୁଣି ଉକ୍ତି ପ୍ରତ୍ୟୁକ୍ତି, ରେଜଲ୍ୟୁସନ ପ୍ରଶଂସା ସମ୍ବାଦ ହେ । ଗମ୍ଭୀରରେ । ଏସ୍-ପି-ଇ-ଆଇ-ଦାସଙ୍କ, ଭ୍ରାତୃ ବିଯୋଗ ଜାତ ଶୋକ; ନ ଘେନି ସମ୍ମିଳନୀ, ଯୋଗ ଦେବାର ଘେନି, ତାଙ୍କ ସହିତ ଏକ ଦୁଃଖ ସେ । ଗମ୍ଭୀରରେ । ୧୪ ।

ମାନ୍ଦ୍ରାଜ ପ୍ରଦେଶର, ଓଡ଼ିଆଏ ନଦୋଇ, ଓଡ଼ିଶାସହଯୋଗ ହେବ । ତେବେ ଏହା ଭିନ୍ନଛି, ହେବା ପାନସେ ଚନ୍ଦ୍ର, କହିଲେ ଶ୍ରୀ ବିକ୍ରମ ଦେବ ସେ । ସହଜରେ । ବିଶ୍ୱାସ କରେ ସମ୍ମିଳନୀ,ପ୍ରାର୍ଥନା ହେଉ ଏହା!ସେନ । ସଦାଶିବ ଭୂଷଣ, ବ୍ରଜସୁନ୍ଦର ପୁଣ, ତିରଳା ଯୁବରାଜମଣି ସେ । ସହଜରେ । ୧୫ ।

ଗଞ୍ଜାମ ସିଂହଭୂମ, ଜୟପୁର ମଧ୍ୟମ, ପ୍ରଦେଶ ଫୁଲଝର ଆଦ । ଚନ୍ଦ୍ରପୁର ଡ୍ରଗଛି, ଓଡ଼ିଆ ଜାଉଛନ୍ତି, ସେଠାରେ ସେ ଭାଷା ସମ୍ବାଦ ସେ । ପ୍ରଚଳନ । ହେବାକୁ ହେଲା ପ୍ରସ୍ତାବନ, ମିଷ୍ଟର ଦାସଙ୍କ ବଚନ, ମଞ୍ଜୁଷା ନରେଶର, ପଣ୍ଡା ଶ୍ରୀ ହରିହର, ମିଶ୍ର ଶ୍ରୀ ରାମ ନାରାୟଣ ସେ । ପ୍ରଚଳନ । ୧୬ ।

ଶ୍ରୀ ସୂର୍ଯ୍ୟ ନାରାୟଣ, ପଟ୍ଟନାୟକ ପୁଣ, ଗୁଣଗ୍ରାହିଙ୍କ ଶିରୋମଣି । ମହାପାତ୍ର ଗଣେଶ, ଶ୍ରୀ ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର ଗୁଣ ସେ । । ଦଇତ୍ୟାରି - ପ୍ରସାଦ ଦାସ ନୀଳକଣ୍ଠ, ଶ୍ରୀ ସଦାନନ୍ଦ ଘୋଷ ବିଷ୍ଣୁ, ଶ୍ରୀରାମକୃଷ୍ଣ ପଟ୍ଟନାୟକ ଦୟାନିଧି ବିନୋଦ ନିତ୍ୟାନନ୍ଦ ଭଣି ସେ । ଦଇତ୍ୟାରି । ୧୭ ।

ସ୍ୱତନ୍ତ୍ର ବାଳ ବିଦ୍ୟାଳୟ, ହେଉ ଉଦୟ, ରମଣୀବିଦ୍ୟାଳୟ ହେଉ । ତାରପର ଦର୍ଶନ, କରନ୍ତୁ ନାରୀଗଣ, ଉତ୍କଳ ଭାଷାଭଣ୍ଡାର- ଯେହୁ ସେ । ପ୍ରଦେଶରେ । ସ୍ତ୍ରୀ ଶିକ୍ଷା ସର୍ବାଙ୍ଗୀଣ ରୂପେ । ହେବାକୁ ଜଣାଇବା ରୂପେ । କୌଣସି ଏକ ବାଳ ବିଦ୍ୟାଳୟରେ ହେଉ ଅଧୀନେ ହିନ୍ଦୁ ଭରୂପେ ସେ ପ୍ରଦେଶରେ । ୧୮ ।

ଉତ୍କଳେ ପ୍ରାଥମିକ, ଶିକ୍ଷା ହେଲେ ଅଧିକ, ମଙ୍ଗଳ ହେବ ବୋଲି କରି । ପୁଣି ମଧ୍ୟମ ଶ୍ରେଣୀ, ଶିକ୍ଷାକୁ ମନେ ଘେନ, ତାହାର ଆଧିକ୍ୟ କରିବ ସେ । ସମର୍ଥିଲେ । ଶ୍ରୀ ଗୋବିନ୍ଦ ପୀତବାସ, ସନ୍ୟାସୀରାଜ ଋଷିଙ୍କ ପାଶ । ଲଣ୍ଡାଣୀ ପଟ୍ଟଣାର, ଜୟପୁର ଅଞ୍ଚଳ, ପୃଥକ୍ ଜିଲ୍ଲାରେ ପ୍ରକାଶ ହେବ । ସମର୍ଥିଲେ । ୧୯ ।

ଅପଲ ନରସିଂହ, ପଟ୍ଟନାୟକଙ୍କ ସ୍ନେହ, ବହୁଣ ବହିଲେ ମୁମ୍ଭାର । ଶ୍ରୀ କଣ୍ଟକୃଷ୍ଣ ମହାପାତ୍ର ହୋଇଣ ସାହା, ମୋହଲେ ଏହାର ବାସ୍ତବ ସେ । ହନୁମନ୍ତ । ମୃର୍ତ୍ତ ପାଠକ ଭୁବନ୍ତରେ, ବାହାର ହେଲେ ସମର୍ଥରେ । ଅଗାମୀ ସମସ୍ତରେ, ହେବ ଯେଉଁ ପ୍ରକାରେ, ସମିତି କାର୍ଯ୍ୟ-ନିର୍ବାହରେ ସେ । ହନୁମନ୍ତ । ୧୦ ।

ପାରୁଳା ଗଜପତି, ବିକ୍ରମ ଦେବ ଅତି, ଯତନେ ଯୋଗ ଦେଇ ଥିବେ । ମାନ୍ଦସା ଗୋବିନ୍ଦ, ଅବର ଗୌରଚନ୍ଦ୍ର, ଅପର୍ଣ୍ଣା ପଣ୍ଡାଙ୍କ ଥିବେ ସେ । ହରିହର । ପଣ୍ଡା ଏ ଶ୍ରୀ ବ୍ରଜକିଶୋର, ନୀଳକଣ୍ଠ ମହାପାତ୍ର । ଶ୍ରୀ ଗୋପୀନାଥ ଗୋବର୍ଦ୍ଧନ ଦାସ ବାବାଜି ନିତ୍ୟାନନ୍ଦଙ୍କ ସଙ୍ଗତର ସେ । ହରିହର । ୧୧ ।

ଶ୍ରୀ ଗୋପବନ୍ଧୁ ଦାସ, ବ୍ରଜସୁନ୍ଦର ପାଣି, ଥିବେ ଦଇତ୍ୟାରି ପ୍ରସାଦ । ଅଗ୍ରର୍ଯ୍ୟ କୃଷ୍ଣଚନ୍ଦ୍ର, ଆନନ୍ଦେ ହୋଇ ସାନ୍ଦ୍ର, ଚିତ୍ତରୁ ତେଜିଣ ବିଷାଦ ସେ । ଉତ୍ସାହରେ । ଶ୍ରୀ ରାମନାରାୟଣମିଶ୍ର, ମିଳିବେ ଉଦ୍ୟୋଗୀ ଅଜସ୍ର । ଜିଲ୍ଲା ଜିଲ୍ଲାରେ ଭେଟି, ନିର୍ବାହକା କମିଟି, ଗଠନ କରିବେ ଅବଶ୍ୟ ସେ । ଉତ୍ସାହରେ । ୧୨ ।

ଖେମଣ୍ଡିର ନରେଶ, ଗୋଲକପଦଦାସ, ଶ୍ରୀ ଲକ୍ଷ୍ମୀନାରାୟଣ ଦେବ । ଅପର୍ଣ୍ଣା ପଣ୍ଡା ଭାବ, ହୃଞ୍ଜଲି ଭାନୁ କବି, ଚନ୍ଦ୍ର ଗାଇଲେ ସର୍ବ ସ୍ତବ ସେ । ମନୋହର । ସ୍ୱରେ ସେ ହେଲା ପ୍ରତିପନ୍ନ, ଛନ୍ଦଙ୍କ ନାଟକ ବିଧାନ । ଶ୍ରୀବସ୍ତ୍ରପଣ୍ଡା ମାତୃ ଭାଷାକୁ କରି ପିତୃ ପାଳନା ଭାବେ ପ୍ରକଟନ ସେ । ମନୋହର । ୧୩ ।

ଶିଳ୍ପ ବାଣିଜ୍ୟ ଆଦି, କୃଷି କର୍ମସମ୍ପାଦ, ଜଗତେ ଯାହା ଲାଭ କର । ସେମାନ ପ୍ରବର୍ତ୍ତାଇ, ଓଡ଼ିଆ ଭାଇ ପାଇଁ, ଉପଦେଶ ଦେଲେ ଅପାରସେ । ବାରମ୍ବାର । ବୁଝାଇ କହିଲେ ସଭାର, ଉଚିତ ଏମନ୍ତ ବେଭାର, ଭୂଷଣ ବସନରେ, ଆହାରେ, ବ୍ୟବହାରେ, ଶିକ୍ଷା ବଢ଼ିଲେ ପରିଷ୍କାର ସେ ବାରମ୍ବାର । ୧୪ ।

ମାତୃ ଭୂମିର ହେତ, ରକ୍ଷିବାକୁ ଅନେକ, ଉଦ୍ଦୀପନପୂରଣ ବାକ୍ୟ । ପ୍ରୟୋଗ କରି ଏକ, ଏକରେ ରକ୍ଷି ଥାଇ, ବୁଝାଇ କହିଲେ ଅନେକ ସେ । ସଭ୍ୟ ଗଣ, ଏକରୁ ଅଧିକ ପ୍ରବୀଣ, ପ୍ରୟୋଗ କରି ଯୁକ୍ତି ମାନ । ଏପରି ସମ୍ମିଳନେ, ଅବଶ୍ୟ ଏକମନେ ଉନ୍ନତିଂ ହେବ ନିର୍ଦ୍ଧାରଣ ସେ । ସଭ୍ୟଗଣ । ୨୫ ।

ଇତି ପୂର୍ବେ ନ ଥାଇ, ସମ୍ମିଳନୀ ବେଷ୍ଟକ, ସମାପ୍ତ ଶତକ ସ୍ଥାନରେ କିନ୍ତୁ କୌଣସି ଠାରେ, ଏପ୍ରକାର ସମ୍ଭାରେ, ନୋହିଛୁ ଆମ୍ଭ ଦେଖି ବାରେ ସେ । ମହାରାଜ, ପାରଲା ଗଜପତି ଆଜ, ଉଦ୍ୟୋଗୀ ହେଣ୍ଟୁ ଏସମାଜ । ତାଙ୍କ ଶରବ ନାମ, ଓଜ ପ୍ରତାପଧାମ, ଅନୁରୂପରେ ସୁବରାଜସେ, ମହାରାଜ । ୨୬ ।

---

୨ୟ ଛନ୍ଦ ପରଧାନ ।

ରାଗ—ରସକୋଇଲା ।

କେପେଣ୍ଟୁଲନ କେହୁଟପକନ, କେ ଗାଏ ହେଟ କୋଟଂ ପରିଧାନ । କାହାମୁଣ୍ଡରେ ତେଲେଙ୍ଗା କଂ ଗୁଡ଼ୀ, କାହ ଓଡ଼ିଆ ଜାତିପ୍ର ପଗଡ଼ି ସେ । କାହିଁରେ ସାହେବ ଟୋପି ଯେ, କାହାର ଚଉଗା କେବା ଧୋତି ଲୁଗା ଜରଦାର ଥୋପି ଥୋପି ଛୁଯ । ୧ ।

କଦଳୀଭଣ୍ଡା ପରପାଗ ଜୁଡ଼ା, କାହାକୁ ଦୈବୋଲ ପଡ଼ଅଣ ବେଭା, କାହା ମସ୍ତକେ ଦଣେ ଚୂଟିକେଶ, କାହାଚୁଟି ହଲୁଇ ଫର ଫର୍ ସେ । କେ ସଜାଡ଼ ଦାଢ଼ୀ ନିସ ଯେ, ଅନେକ ଭାଇଙ୍କି ନିରେଖି ଦେଖିଲି ବେଶ ସବୁ ଭିନ୍ନ ଦୃଶ୍ୟ ଯେ । ୨ ।

ଓଡ଼ିଆ ହୋଇ ପରଧାନେ ଭେଦ, ରକ୍ଷିବା ଜାତିକି ନୋହେ ପସନ୍ଦ । ଜାତୀୟ ହେତ ରକ୍ଷିବାକୁ ବାଦ, ଥିଲେ ଛଡ଼ାଇବ ଏ ପର ମାଦ ସେ । ନ କର ଅନୁକରଣ ଯେ, ପରଂ ପର ପରିଚ୍ଛଦ ବ୍ୟବହାର ଦେଖିଲେ ଅସ୍ଥିର ମନ ଯେ । ୩ ।

ଦେଖ ପଞ୍ଜାବୀ ଅବାମାରବାଡ଼ୀ, ବାନ୍ଧନ୍ତି ସେ ନିଜ ଜାତି ପଗଡ଼ି । ନାଗର ମରଠା କପୁଳକସ୍ଥାଟୀ, ସମସ୍ତଙ୍କର ପାଗପରିପାଟୀ ସେ । ପରି-ଚ୍ଛଦ ଦେଖିଲେ ଜାଣି ଯେ, କେବେହେଲେ ଜାତୀୟତା ପାଇବନି ମିଛେ କରୁଥିଲେ ଗାଁଠି ହେ । ୪ ।

ବସନମୂଳରୁ ପ୍ରତିଷ୍ଠା ହୋଇ, ଏକଧରଣେ ତାହା ଚିହ୍ନ ଭାଇଂ। ପରିଧାନ ଯେବେ ଭିନ୍ନ ହୋଇଲା, କସ ଅଉ ଜାତୀୟତା ରହିଲା ସେ । ଜଗତେ ମେଳେକ ଜାତି ଯେ, ଚିନ୍ନ ଭିନ୍ନ ହିର ଦେଖିଆସ ଯାଇ ଏପରି କେହି ନାହାନ୍ତି ଯେ । ୫ ।

ଯଦି ସାହେବ୍ବେ ହେଲେ ଅବରଣ, ଦେଖୁଛ ଅଛ ତୁମ୍ଭେ ତାଙ୍କ ବେଶ, ତାଙ୍କର ଜାତୀୟ ପୋଷାକ ଯାହା; ସେମାନେ କେବେ ନ ଛାଡ଼ନ୍ତି ତାହାଁ ସେ । ଅମ୍ଭର ନାହିଁ ବ ଲାଜ ଯେ । ଅଡ଼ୋଶି ପଡ଼ୋଶୀ ବେଶଭୂଷା ଦେଖି ତାଙ୍କପରି ହେବା ସଜ ଯେ । ୬ ।

ଯେବେ ସାଧିବ ଏକତାବଧାନ, ସଂଶୋଧି ନିଅ ଆଗେ ପରି-ଧାନ, ଭୂଷଣ ଭୂଷଣ ବସନ ଠାଣି, ଦେଖିଲେ ସେ ଯେଉଁ ଜାତିବ ଜାଣି ସେ । ଅଛ ଏମନ୍ତ କାହାଣି ଯେ, ନ ବୁଝି ସୁଝି ହେଁଇ ବାକୁ ଦବାଠା, ଦେଖି ହୃଦନ୍ତୁଏ ଠାଣି ଯେ । ୭ ।

ପୂର୍ବେ ଓଡ଼ିଆ ଏ ଧୋତି ଚଦର, ପିନ୍ଧୁଥିଲେ କେଡ଼େ କରି ଆଦର, ଉଷ୍ଣୀଷ ଅଙ୍ଗରଖା ପିନ୍ଧୁଥିଲେ, ଦେଶୀୟ ଉପାନତ ଭୁଦୁ ଥିଲେ ସେ । ଏବେ ସବୁ ବିପରୀତ ଯେ, ଯେବେ ଯାହା ମନ ଯହିଁରେ ମାନିଲ ସେପରି ସେ ପରହିତ ଯେ । ୮ ।

ସ୍ୱଜାତୀୟ ବେଶ ଭୂଷାର ତ୍ରୁଟି, ନ କରି ରଖ ଏକାପରି ଭୃଷ୍ଟୀ, ଏକଧରଣ କରି ପରିଧାନ, ଏହାହିଁ ଚିରକାଳର ବିଧାନ ସେ, ଉଶୃଙ୍ଖଳ ନୋହି ଲବେ ଯେ, ସଂଯତ ସୋପାନ ଅବୋହଣ କରି ଉନ୍ନତ ହୋଇବ ସେବେ ଯେ । ୯ ।

କୃଷି ବାଣିଜ୍ୟ ଶିଳ୍ପ ଏକ ଯୋଗେ, ସାଧନଙ୍କର ସଙ୍ଗେ ଅନୁ-
ରାଗେ, ବିଦ୍ୟା ଅଧ୍ୟୟନେ ଲଗାଅମନ, ବିଜ୍ଞାନଶାସ୍ତ୍ରକୁ ଧର ପ୍ରଧାନ
ସେ, ସଂସ୍କୃତ ବିଦ୍ୟା ନ ଛାଡ଼ ଯେ; ତାକୁ ପଢ଼ି ଶୁଣି ତଦନୁ ସାରେ
ସବୁ ଅପଣା ସଜାଡ଼ ଯେ । ୧୦ ।

ରାଜା ଜମିଦାର ଧନି ସନ୍ତାନେ, ପକାନ୍ତୁ ସୁଦୃଷ୍ଟି ଜନମ ସ୍ଥାନେ,
ସଦର ମାନଙ୍କେ କରିଣ ବାସ, ନ ଆଦର ନାନାବିଧ ବିଳାସ ସେ,
ସ୍ୱାର୍ଥୀ ସେବକ ମାନେ ଯେ, ପାଶରେ ରହନ୍ତୁ ଠେକ ରଖି କରି
ମୁନିବଙ୍କ ଧନ ମାନେ ଯେ । ୧୧ ।

କୃଷି ପ୍ରଧାନ ଏ ଦେଶ ଆମ୍ଭର, ତାହା ଉନ୍ନତିରେ କର ଆଦର
ଜଳମୂଳକ କୃଷିର ସୁବିଧା, ଏଥିରେ କେହି ନ କରିବେ ଦ୍ୱିଧା
ସେ, ସେଥିପାଇଁ ପୂର୍ବତନେ ଯେ, କଲେ ସ୍ଥାନେ ସ୍ଥାନେ ମନୋମତ
ହେବା ଜଳାଶୟ ସଯତନେ ଯେ । ୧୨ ।

ନିଜ ନିଜ ଗ୍ରାମେ ଦୃଷ୍ଟି ପକାଅ, କି କି ଅଭାବ ଗ୍ରାମରେ ଜଣାଅ,
ଗୋପଥ ଶ୍ମଶାନ ସୁମାର୍ଗତୟ, ଅସୁବିଧା ନୋହୁ କର ଉପାୟ ସେ ।
ତୋଟାବାଡ଼ ବାଟ ଘାଟ ଯେ, ଅଛନ୍ତି ନାହିଁ ପରୋର ତହିଁରେ
ନଜର ରଖ ନିରନ୍ତ ଯେ । ୧୩ ।

ପଶୁପାଳନରେ ଲଗାଅମନ, ସବୁ ସୁଖପାଇଁ ସେ ମୂଳଧନ, ବାଳକ
ବାଳିକାଙ୍କ ଶିକ୍ଷାପାଇଁ; ଗ୍ରାମେ ଗ୍ରାମେ ବିଦ୍ୟାଳୟ ବସାଇ ସେ ।
ପଢ଼ାଅ ବିବିଧ ପାଠ ଯେ, ପ୍ରାଥମିକ ଶିକ୍ଷା ପ୍ରଚାର ନ ହେବା ଯୋଗୁଁ
ସବୁ ହୁଏ କାଠ ଯେ । ୧୪ ।

ଆଗେ ଯେଯାହା କୁଳ ବିଦ୍ୟାମାନ, ପ୍ରାଣପଣେ ସାଧି ଲଭି
ସୁଜ୍ଞାନ, ନିଜ ନିଜ ବିଦ୍ୟାବଳେ ଜୀବିକା, ଚଳାଉଥିଲେ କରି ବଣା
ବକାଣି ସେ । ଏବେ ସେ ସମସ୍ତ ଫିକା ଯେ, ସାହିତ୍ୟ ଅଙ୍କ ଭୂଗୋଳ
ଇତିହାସେ ସବୁରି ଯୋଗ୍ୟତା ଏକା ଯେ । ୧୫ ।

ଧର୍ମ ସ୍ୱରୂପଣ ଲଘୁ କାହାର, କଶବାକୁ ଯହିଁ ତହିଁ ଅହାର । ବୃଦ୍ଧବସ୍ତ୍ର ସବୁ ହେଲେଣି ଷଣ୍ଡ, ଶ୍ରେଷ୍ଠଜାତିଙ୍କି ନ ମାନନ୍ତି ଦାଣ୍ଡ ସେ, ଅମାନୀଙ୍କୁ ହୋଇ ବଳେ ଯେ, ଆସ୍ତର ବସ୍ତର ଉଠିଯାଉ ବୋଲି ବାହାର ଅଛନ୍ତି ଦଳେ ଯେ । ୧୭ ।

ପୂର୍ବ ଗୌରବକୁ ନ ଖଞ୍ଜ ଦାଢେ, ବର୍ଣ୍ଣାଶ୍ରମ ଧର୍ମ ଆଚରି ଗାଢେ । ଧର୍ମଗ୍ରନ୍ଥ ନର ପଶୁ ସମାଜ, ନାହି ଶାସ୍ତ୍ରେ କହୁଛନ୍ତି ଏମାନ ସେ । ମନୋଜ୍ଞ ହେବାଟା ମନ ଯେ । ସ୍ୱଦେଶୀ ଆସ୍ତର ବସ୍ତର ଛାଡିବା କେବେହେଁ ନୁହେ ପସନ୍ଦ ଯେ । ୧୮ ।

• ଦେଶରେ ପ୍ରଚୁର ଅନ୍ନ ସଂସ୍ଥାନ, ହେବାପାଇଁ ଅଗକର ବଧାନ, ଦୁର୍ଭିକ୍ଷ ଦେଖ ଘର କଲ୍ପ ଦେଖେ, ଇହୁଲ୍ଲ ପୁଣି ନ ଧୂଷେ ଲବେ ସେ ସେ । ଅନ୍ନହୀନେ ଅଧିକାଂଶେ ଯେ । ଜୀର୍ଣ୍ଣ ଶୀର୍ଣ୍ଣ ଦେହ ଘେନ ବୁଲୁଛନ୍ତି ସଉ ଯାଉଛନ୍ତି କ୍ଲେଶେ ଯେ । ୧୯ ।

ବସନ୍ତ ବସୂଚ ରୋଗ ପ୍ରବଳ; ଦେଖ ଦେଶକୁ ଦଉଅଛି ଦଳ । କେତେ ପ୍ରାଣୀ ମରୁଛନ୍ତି ଶକଲେ । ତାର ପ୍ରତିକାର ଲୋଡ଼ ସକଲେ । ଏପରି ଅମ୍ଭା ସଜାଡ ଯେ, ପର ଉପକାରେ ଲଗାଇବାପାଇଁ ବସୁଥାଅ ଧାଉ ଯାଡ଼ ଯେ । ୨୦ ।

ସ୍ୱକର ଜୀବିକା ଝଗଡେଟେକ । ପେଟ ପୋଷିନେବେ ସ୍ୱମାନେ ଟେକ ସକଲେ ସ୍ୱକାର୍ଯ୍ୟ ପାଟବେ ନାହିଁ । ଏକଥାଟି ହଡ୍ୟ ଅଟେହେ ଭାଇ

ଦେଶରେ ପଡ଼ଇ ହଟାଯେ ।

ବନ୍ଧୁଲୋକେ ଦାସ ଅଶା ରଖିବାରୁ ଫଳ ଫଳଇ ଓଲଟା ଯେ । ୨୧ ।
ଧର୍ମଧାରଣରେ ଜଗତଚଳେ, କେବେହେଁ ତାକୁ ନ ପକାଅ ତଳେ ଧଇଲେ ତାକୁ ହବୁହେବବଳେ, ଅଧର୍ମଯଦ୍ୟପି ଲୋକେ ପ୍ରବଳେସେ । ହୁଡ ଫାଦଡଲେ ଦଳେଯେ, ମିତମଣି ତାକୁ ଆଦରକଲେ 'ସେ ଝୁରୁ ଦେଉଥାଏ ଗଳେ ଯେ । ୨୨ ।

ଓଡ଼ିଆଅଟେ ଅମ୍ଭର ସ୍ୱଦେଶ, ଶ୍ରୀଭଗବାନ୍ତି କ୍ଷାଦ୍ୟପାନ ସୁବେଶ । ଯାହାର ଯେପରି ଥାଉ ମାଣ୍ଡଳୀକ । ଭବନ୍ତ କିର୍ମ୍ଯଶବଡ଼ା ଜାଣ୍ଡଅସେ । ପ୍ରକୃତ ଓଡ଼ିଆ ପୁଅତେ, ସ୍ୱଦେଶ ରତନ ଚିହ୍ନାଣ ଯତନ, ସ୍ୱଦେଶ ପେଣ୍ଡରେ ଥିଅତେ, । ୨୩ ।

# ପାରଳା ବର୍ଣ୍ଣନା ।

ଯାଇଥିଲି ଭାଇ ପାରଳାକୁ ମୁହିଁ ଦେଖି ଚଳିଁ ସମ୍ମିଳନୀର ଶୋଭା । ଗଜପତି ମହାରାଜ ନିଜେ ଅଜ ଭାଇଙ୍କ ସେବାରେ ଅଛନ୍ତି ଉଭା । ୧ । ପାରଳା ନଗର ଶୋଭାର ଆକର ଧନଧାନ୍ୟ-ପୂର୍ଣ୍ଣ ସମୃଦ୍ଧିଶାଳୀ । ଅଗଣିତଗୁଣୀଗଣେ ଛନ୍ତି ଘେରି ମହାରାଜ ତାଙ୍କୁ ଅଛନ୍ତି ପାଳି । ୨ । ଆସିଛନ୍ତି ନାନା ସ୍ଥାନୀୟ ଉତ୍କଳେ ପୁରୀ କଲିକତା ମେଦିନୀପୁର । ବଣାଖପଟଣା ସିଂହଭୂମ ଆଦି ଓଡ଼ିଆ-ଭାଇଏ ଦୂର ଦେଶରୁ । ୩ । ସୁବିଶାଳ ସଭାମଣ୍ଡପମଧରେ ସ୍ୱଣିରାଜି କାଷ୍ଠାସନସଜ୍ଜିତ । ସଭାମଣ୍ଡପୀୟ କାରୁକାର୍ଯ୍ୟମଯୁତବେ ବଣିକେମି ହେବେ ଲଜ୍ଜିତ । ୪ । ଗଞ୍ଜାମଜନ୍ମାଭ ବନ୍ଧୁନରେଶର ବସିଛନ୍ତି ସମ୍ମିଳନୀରେ ମିଶି । କଟକୀଅଞ୍ଚଳର ରାଜା ମଧୁପୁରର ଆସିଛନ୍ତି ଦେଶଁ ମଙ୍ଗଳେ ଖୁସି । ୫ । ପାରଳାଖେମଣ୍ଡି ଯୁବରାଜଙ୍କର ଗମ୍ଭୀର ଉଦାର ନିରଭିମାନ । ସ୍ୱଭାବ ଅତ୍ୟନ୍ତ ସରଳ ହେବାରୁ ସଭ୍ୟମାନେ ପାଇ-ଥିଲେ ସମ୍ମାନ । ୬ । ଅଭ୍ୟର୍ଥନା ସମିତିର ସଭାପତି ମହନ୍ତ ଶ୍ରୀରାଧା କୃଷ୍ଣ ଗୋସ୍ୱାମୀ । ମହୋଦୟଙ୍କୁ ପାରଳା ଗଜପତି ସଙ୍ଗେ ଦେଖି ହୋଇ ଅଛନ୍ତି ଖୁସି । ୭ । ସ୍ଥାନୀୟ ବଶିଷ୍ଠଶିଷ୍ଟଙ୍କ ସମଭବ୍ୟାହାରେ ନାଉପଡ଼ାକୁ ସଅର । ବାସ୍ପୀୟଶକଟେ ବସାଇଣ ଭାଇମାନଙ୍କୁ ପାଖେଟି ଅଣିଲେ ବଉ । ୮ । ଭାଇମାନଙ୍କର ବଦାନ୍ୟ ବେଭରେଁ ସେହୁପରି ଶିଷ୍ଟାଚାର ଦେଖାଇ । ଗଜପତିଦେବଙ୍କର ଭ୍ରାତୃଭାବ ପରିଚୟ

ହେଲା ଅପୂର୍ବ ହୋଇ । ୯ । ଶଭଉସ୍ଥାନର ଅତିଥିବାନର ମାନଙ୍କ
ଖାଦ୍ୟ ପାନର ବ୍ୟବସ୍ଥା । ସୁବନ୍ଦୋବସ୍ତ କରିଥିଲେ ସମସ୍ତ ବନ୍ଧୁବ୍ୟୟ
ଅଙ୍ଗୀକାରେ ସର୍ବଥା । ୧୦ । ଦେବନରପତିଙ୍କର ଦେଖେ କୀର୍ତ୍ତି
ଦେଖି ମନେ ହେଲା ମହାଆନନ୍ଦ । ଧନ୍ୟ ଧନ୍ୟ ବୋଲି ପଢ଼ୁଅଛି
ହୃଦ ଧର୍ମ୍ୟ ହେ ପାରଳା ରାଜ୍ୟ ନରେନ୍ଦ୍ର । ମଠ ଦେବାଳୟ ଧର୍ମଙ୍କ
ଆଳୟ କେତେ କବି ଗଳୀ ତଦ ଗଣିବ । ରାଜାଙ୍କ ଭବନ କଲେ
ଯେ ଲୋକନ ଅଗଣିତାଜମହଲ ମଣିବ । ୧୨ । ଲେଟେଭ ହୋଟା-
ବାଡ଼ ବଙ୍ଗଳା ସଜାଡ଼ି ଦେଇଛନ୍ତି ଦେଖି ହୋଇବ ବଶ । କଲେଜ
ଭବନ ଇଞ୍ଜିନ ସଦନ ଗଣି ଗଣି କହୁ ନୁହେ ଠିକଣା । ୧୩ ।
ସବୁଠାରୁ ବଳ ଶୋଭା ନୁହେ କଳ ବୃନ୍ଦାବନ କୋଠାକୁ ମନୋ-
ହର । ମହେନ୍ଦ୍ର ତନୟ ନଦୀତଟରେ ଏହା ସୁନିର୍ମିତ ଯଥା ଗିରିକନ୍ଦର ।
କାଠ ପଥର ଲୌହ କଞ୍ଚ ଏଥିର ନାହିଁ ଖାଲିଚୂନ ସୀମେଣ୍ଟ ମାଟି ।
ଘନ ନରମାଣି ଦେଇ ଛବଳାଣି ଅଦ୍ଭୁତଯନ୍ତ୍ରଭରେ କୋଠାଟି ।୧୫
ସୀମେଣ୍ଟ ମାଟିରେ କପରପାଟିରେ ବାନ୍ଧ କଡ଼ ବର୍ଗା ଗୁରୁଜଣ୍ଡ ।
ହୋଇଛି ନମୀଣ କଛି ନୋହେ ଜାଣେ ଧନ୍ୟ ସେ ବିଜ୍ଞାନୀ ଧନ୍ୟ ତା
ହାତ । ୧୬ । ଭିନ୍ନ ପୁର ହୋଇ ଶୋଭିଛି ସେ ମହା ମଣ୍ଡଳ ମଧ୍ୟରେ
ଅପୂର୍ବ ପର । ପ୍ରତ୍ୟେକ ଘରରେ ବିଜୁଳି ତାରରେ ଶୋଭାପାଏ ଡ଼ାଳ
ପଦ୍ମବଲ୍ଲରୀ । ୧୭ । ବିମାନ ସମାନ ଗୃହଚୂଡ଼ାମାନ ଲମ୍ବିଲା ବେଳକୁ
ଖସଇ ଠେକା । ନାହିଁ ନାହିଁ ଅନ୍ୟ ଏହାର ସମାନ ଏହିଟି ଏହାକୁ
ତୁଳନା ଏକା । ୧୮ । ନୃପତିଙ୍କ ଗୃହ ଦେଖି ଭୟ ହୁଏ ଦୁଇମାଳ
ଠିଆ ଅଛି ଭରି । ଭିତ ଦନ୍ତ୍ୟାଟି କରନ୍ତି ମୂର୍ତ୍ତି ପ୍ରହାରେ କହିବେ
ପଥର ମାଟି । ୧୯ । ଅତି ଉନ୍ନତରେ ସ୍ଥାପିତ ଏଠାରେ ବାଳକାଙ୍କ
ପାଠାଗାର ଯେପର । ଉତ୍କଳ ମଧ୍ୟରେ ଅମ୍ଭ ଦେଖିବାରେ ବୋଧ ହୁଏ
କାହିଁ ନାହିଁ ସେପର ୨୦ ।

ବଡ଼ ବଡ଼ଦାଣ୍ଡ ହୋଇଛି ପ୍ରସାର ଥାନେ ଥାନେ ଶଙ୍ଖ ପୋଲ ସକଳ,
ମ୍ୟୁନିସିପାଲିଟି ଅଛି ପଥପାନ୍ଥୀ ରୂପରେ ଜଳି ଅଛନ୍ତି ଉଜ୍ଜ୍ୱଳ । ୨୯ ।
ବ୍ରାହ୍ମଣ କରଣେ ଶ୍ରେଷ୍ଠ ଜନଗଣେ ପଣ୍ଡିତ ମଣ୍ଡିତ 'ପାରଳାଗଡ଼' ।
କି ଶୋଭା ପାଏରେ ଉତ୍କଳ ଭୂମିରେ ପ୍ରଦତ୍ତ ଚନ୍ଦ୍ରିଙ୍କ ବନ ପାହାଡ଼ ।

---

ଏ ସଭାରେ ଯେଉଁ ୨ ସ୍ଥାନରୁ ଭଦ୍ରଲୋକେ ଆସି ଯୋଗଦେଇ ଥିଲେ ତାଙ୍କର ଏକ ତାଲିକା ସଂଗ୍ରହ କରିବାର ଇଚ୍ଛା ଅଛି, ଦେଶୀୟ ଭାଇଙ୍କ ଅନୁଗ୍ରହରୁ ଏହାର ବାରାନ୍ତର ମୁଦ୍ରଣ ହେଲେ ତାହା ପ୍ରକାଶ ହେବ—

---

ପୁରୀ ଶ୍ରୀରାମ ଚନ୍ଦ୍ରପୁର ଶାସନ ନିବାସୀ ବାବୁ ଅନନ୍ତ ମିଶ୍ର ସମ୍ମିଳନୀର ପ୍ରଚାରକ ନିଯୁକ୍ତ ହୋଇ ନାନା ସ୍ଥାନରେ ଭ୍ରମଣ କରି ପ୍ରଚାର କାର୍ଯ୍ୟ ସୁଚାରୁ ରୂପେ ନିର୍ବାହ କରୁ ଅଛନ୍ତି ।

---

U. P. Works,—Cuttack.

# ବିଜ୍ଞାପନ ।

| | | |
|---|---|---|
| ୧-ପ୍ରାୟଶ୍ଚିତ୍ତ ମନୋହରଃ | ମୂଲ୍ୟ | ଟ ୦ ।୵ |
| ୨-ଯାଜ୍ଞବଲ୍କ୍ୟ ସଂହିତା | ,, | ଟ ୦ । |
| ୩-ମୁଗ୍ଧବୋଧ ଅଭିଧାନ | ,, | ଟ ୦ ।୨ |
| ୪-ପାକେଳ ଚନ୍ଦ୍ରିକା | ,, | ଟ ୦ ୧୩ |
| ୫-ଛନ୍ଦ ପଦାର୍ଥ | ,, | ଟ ୦ ୧୩ |
| ୬-କାକଯୋଗ ଚନ୍ଦ୍ରିକା | ,, | ଟ ୦ ୧୩ |
| ୭-ନୀଳାଦ୍ରି ମହୋଦୟ | ( ମଲାଟ ବନ୍ଧା ) | ଟ ୧ |
| ୮-ସ୍ୱର୍ଣ୍ଣାଦ୍ରି ମହୋଦୟ | | ଟ ୦।୵ |
| ୯-ଏକାମ୍ର ପୁରାଣ | | ଟ ୦ ୳ |
| ୧୦ ପ୍ରାଚୀ ମାହାତ୍ମ୍ୟ | | ଟ ୦ ୳ |
| ୧୧-ବିଷ୍ଣୁ ସହସ୍ର ନାମ | ( ସଟୀକ ) | ଟ ୦ ୳ |
| ୧୨-ଭାର୍ଗବୀୟ କର୍ମ ବିପାକ | | ଟ ୧ । |
| ୧୩-ଏକାଦଶୀ ମାହାତ୍ମ୍ୟ | | ଟ ୦ ୳ |
| ୧୪-ରସ ରାମାୟଣ ମଞ୍ଜରୀ | | ଟ ୧ |
| ୧୫-ଦାଣ୍ଡି ରାମାୟଣ ( ସପ୍ତକାଣ୍ଡ ) | | ଟ ୫।୵ |
| ୧୬-ଶ୍ରୀକୃଷ୍ଣ ଲୀଳା | | ଟ ୧ । |
| ୧୭-ଶାରଙ୍ଗଧର | | ଟ ୧ ୧ |

ବାଲୁ ବଜାର
କଟକ । } ଶ୍ରୀ ଗୋବିନ୍ଦ ରଥ ।